ISSN: 2456-9194, Vol. IV, Issue. II, Sept 2020

# ପ୍ରତ୍ୟୟ

**(Journal of Odia Language, Culture and Science)**

Journal Homepage: http://cphfs.in/research.php



# ଇଣ୍ଟରନେଟ୍ ଓ ସାମାଜିକ ଗଣମାଧ୍ୟମର କଳେବର

**ଶୁଭସ୍ମିତା ନାୟକ**

ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

ଇ-ମେଲ୍: subhasmita1992bbsr@gmail.com

ମୋ-୯୪୩୯୦୦୬୩୬୫

*ସାରମର୍ମ: ଆଲବର୍ଟ ଆଇନ୍ଷ୍ଟାଇନ୍ ଥରେ କହିଥିଲେ "I fear the day that the technology will surpass our human interaction. The world will have a generation of idiots." ଅର୍ଥାତ୍ ଆଜି ସାମାଜିକ ଗଣମାଧ୍ୟମ ବହୁଭାବେ ସମୟର ଅପଚୟ ଓ ଅବସର ବିନୋଦନର ମାଧ୍ୟମ ପାଲଟିଛି । ଏହା ବହୁଭାବେ ସମାଜର ପ୍ରତ୍ୟେକ ବର୍ଗକୁ ଗ୍ରାସ କରୁଛି ଓ ଏଥିରୁ ଆମ ଯୁବବର୍ଗ ମଧ୍ୟ ବିଚ୍ୟୁତ ନୁହଁନ୍ତି । ବହୁ ଯୁବକ ଯୁବତୀ ସାମାଜିକ ଗଣମାଧ୍ୟମର କୌଣସି ପ୍ରକାର ଅନୁକୂଳ ପ୍ରତିକୂଳ ପ୍ରଭାବ ବିଷୟରେ ନ ଭାବି ସେଥିରେ ଜଡ଼ିତ ରହୁଛନ୍ତି । ସାରା ପୃଥିବୀରେ ଏପରି ୨୦୦ ରୁ ଅଧିକ ସୋସିଆଲ୍ ନେଟୱାର୍କିଂ ସାଇଟ୍ ରହିଛି । ବିଭିନ୍ନ ବିଷୟ, ବିଭାଗ ଓ ଉପବିଭାଗକୁ ଆଧାର କରି ରହିଥିବା ସାଇଟ୍‌ଗୁଡ଼ିକରେ ହଜାରରୁ ଆରମ୍ଭ କରି କୋଟି କୋଟି ସଦସ୍ୟ ଅଛନ୍ତି । କିଛି କିଛି ସାଇଟ୍ କେତେକ ଦେଶରେ ଅଧିକ ଲୋକପ୍ରିୟ ହୋଇଥିବାବେଳେ ଅନ୍ୟ ଦେଶରେ ସେପରି ଲୋକପ୍ରିୟତା ଲାଭକରିନାହିଁ । ତେବେ ଉଭୟ ସକାରାତ୍ମକ ଓ ନକାରାତ୍ମକ ଦିଗରୁ ମାନବୀୟ ଜୀବନକୁ ପ୍ରଭାବିତ କରିଥିବା ସାମାଜିକ ଗଣମାଧ୍ୟମର ସ୍ୱରୂପକୁ ଉପସ୍ଥାପନ କରିବାର ଆବଶ୍ୟକତାକୁ ଅନୁଭବ କରି ଏହି ପ୍ରବନ୍ଧର ପରିକଳ୍ପନା ।*

*ପ୍ରମୁଖ ଶବ୍ଦ: ସାମାଜିକ ଗଣମାଧ୍ୟମ, ଫେସ୍‌ବୁକ୍, ସୋସିଆଲ୍ ମିଡ଼ିଆ, ନେଟୱାର୍କିଂ, ଇଣ୍ଟର୍ନେଟ୍*

ଜ୍ଞାନ ଆଉ ମଣିଷ ମସ୍ତିଷ୍କରେ ସୀମିତ ହୋଇ ରହିନାହିଁ । କାରଣ ଏବେ ଯାହାକୁ ଯେକୌଣସି ପ୍ରଶ୍ନ ପଚାରିଲେ, ଉତ୍ତର ଲାଗି ସେ ଆଉ ମସ୍ତିଷ୍କ ଲଗାଉ ନାହିଁ । ସଙ୍ଗେ ସଙ୍ଗେ ଇଣ୍ଟରନେଟ୍‌ର ସାହାଯ୍ୟ ନେଉଛି । ସେମିତି କିଛି ବି ପାଇଁ ସେ ଇଣ୍ଟରନେଟ୍ ଖୋଲୁଛି । ଇଣ୍ଟରନେଟ୍ ପାଇଁ ବିଶ୍ୱ ଏବେ ହାତମୁଠାରେ । ଦିନକୁ ଦିନ ଇଣ୍ଟରନେଟ ବ୍ୟବହାରକାରୀଙ୍କ ସଂଖ୍ୟା ବୃଦ୍ଧି ପାଉଛି । ୧୯୯୮ ମସିହାରେ ପାଖାପାଖି ୨୦ କୋଟି ଓ ୨୦୦୦ରେ ୩୬ କୋଟି ଲୋକ ଇଣ୍ଟରନେଟ୍ ବ୍ୟବହାର କରୁଥିବା ବେଳେ ୨୦୧୭ ଶେଷ ସୁଦ୍ଧା ବିଶ୍ୱ ଜନସଂଖ୍ୟାର ଶତକଡ଼ା ୫୦ ଭାଗରୁ ଉର୍ଦ୍ଧ୍ୱ ଅର୍ଥାତ୍ ୪୧୫ କୋଟି ଲୋକ ଇଣ୍ଟରନେଟ୍‌ରେ ସମୟ ବିତାଉଛନ୍ତି । ଇଣ୍ଟରନେଟ୍ ବ୍ୟବହାରକାରୀଙ୍କ ସଂଖ୍ୟା ସମ୍ପ୍ରତି ଚାଇନାରେ ସର୍ବାଧିକ ୭୭ କୋଟି, ତା\'ତଳକୁ ଭାରତରେ ୪୬ କୋଟି, ଆମେରିକାରେ ୩୧ କୋଟି, ବ୍ରାଜିଲ୍‌ରେ ୧୪ କୋଟି, ଇଣ୍ଡୋନେସିଆରେ ୧୪ କୋଟି, ଜାପାନ୍‌ରେ ୧୧ କୋଟି, ଋଷିଆରେ ୧୦ କୋଟିରୁ ଉର୍ଦ୍ଧ୍ୱ । ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ଏହି ସଂଖ୍ୟା ଆଶାତୀତ ଭାବେ ବଢ଼ିଚାଲିଛି ।

ଇଣ୍ଟରନେଟ୍ ଆଣିଛି ସୋସିଆଲ୍ ମିଡ଼ିଆର ମାୟା । ମୋବାଇଲ୍ ଫୋନ୍‌ରେ ଇଣ୍ଟରନେଟ୍‌ର ସୁବିଧା ସହଜରେ ଉପଲବ୍ଧ ହେବା ପରଠାରୁ ସୋସିଆଲ ମିଡ଼ିଆର ଚାହିଦା ଦିନକୁଦିନ ବଢ଼ିଚାଲିଛି । ସତୁରି ଦଶକରେ ଇଣ୍ଟରନେଟ୍ ଆସିବାପରେ ଏହି ମାଧ୍ୟମଟି ସବୁ ଦୃଷ୍ଟିରୁ ସକ୍ଷମ ହେବାକୁ ଲାଗିଥିଲା ପାଖାପାଖି ୩୦ ବର୍ଷ । ସାଧାରଣ ଲୋକଙ୍କ ପାଇଁ ଇଣ୍ଟରନେଟ୍ ସହଜ ହେଲା ୨୦୦୦ ମସିହା ବେଳକୁ ।

ସୋସିଆଲ ମିଡ଼ିଆ ହେଉଛି ଇଣ୍ଟରନେଟ୍ ମାଧ୍ୟମରେ ଚାଲୁଥିବା ଏକ ପାରସ୍ପରିକ ଯୋଗାଯୋଗର ମଞ୍ଚ। ଏହା ମାଧ୍ୟମରେ ପରସ୍ପର ଭିତରେ ବା ଗୋଷ୍ଠୀ ଭିତରେ ତଥ୍ୟ ଓ ସୂଚନାର ଆଦାନ ପ୍ରଦାନ କରିହୁଏ। ସାଧାରଣତଃ ସାମାଜିକ ଗଣମାଧ୍ୟମ ହେଉଛି ଏକ ଇଣ୍ଟରନେଟ୍ ଆଧାରିତ ପ୍ଲାଟଫର୍ମ ବା ମଞ୍ଚ, ଯେଉଁଥିରେ ପାଠ (text), ଛବି (image), ଅଡ଼ିଓ (Audio) ଭିଡ଼ିଓ (Video) ଓ ଗ୍ରାଫିକ୍ସ ଆକାରରେ ସୂଚନା ବା ଡେଟାର ବିନିମୟ ହୋଇଥାଏ। ଉଭୟ ବ୍ୟକ୍ତିଗତ ସ୍ତରରେ ଓ ଗୋଷ୍ଠୀଗତ ସ୍ତରରେ ଏହା ମାଧ୍ୟମରେ ସୂଚନା ଆଦାନପ୍ରଦାନ ହୋଇଥାଏ । ତେବେ ସାମାଜିକ ଗଣମାଧ୍ୟମର ଇଣ୍ଟରାକ୍ଟିଭ ବା ପାରସ୍ପରିକ ସମ୍ପର୍କ ରକ୍ଷାର କୌଶଳ ସବୁଠୁ

ଅଧିକ । ଏହି ଗଣମାଧ୍ୟମ ଏକା ସାଙ୍ଗରେ ବ୍ୟକ୍ତି ସହିତ ଓ ସମାଜ ସହିତ ବିଶ୍ୱସ୍ତରରେ ଇଣ୍ଟରନେଟ୍ ମାଧ୍ୟମରେ ତତ୍କାଳ ସମ୍ପର୍କ ରକ୍ଷା କରିପାରେ । ଆଜି ସାମାଜିକ ଗଣମାଧ୍ୟମର ପହଞ୍ଚ ଯେତିକି ଯେତିକି ବଢୁଛି ଏହାର ଉପଯୋଗକର୍ତ୍ତା ଓ ପ୍ରଶଂସକଙ୍କ ସଂଖ୍ୟା ତଦନୁରୂପେ ବଢ଼ିଚାଲିଛି । ଏବେ ବଜାରରେ ଆମେ Google, Facebook, Twitter, Orkut, Lingdin, WhatsApp, Blogging ଆଦି ଭଳି ବିଭିନ୍ନ ସାମାଜିକ ଗଣମାଧ୍ୟମ ପ୍ଲାଟଫର୍ମ (Platform) ଓ ସଫ୍ଟୱେୟାର (Software) ଦେଖିବାକୁ ପାଉଛୁ ।

ସାମାଜିକ ଗଣମାଧ୍ୟମରେ ପରିକଳ୍ପନା ଏହି ମାତ୍ର ୨୦ ବର୍ଷ ତଳର । ବିଶ୍ୱରେ ସାମାଜିକ ଗଣମାଧ୍ୟମର ପ୍ରଥମ ବ୍ୟବହାର ଆମେ ବର୍ଷ ୧୯୯୭ରୁ ପାଉ । ଏହା ପରଠାରୁ ଆଜି ପର୍ଯ୍ୟନ୍ତ ସମୟ ଭିତରେ ଏହା ଖୁବ୍ ଲୋକପ୍ରିୟ ହୋଇପାରିଛି । ଆହୁରି ମଧ ସାରା ପୃଥିବୀରେ ଏହାର ବ୍ୟବହାର କ୍ରମେ ଦ୍ରୁତଗତିରେ ବଢିବାରେ ଲାଗିଛି । ୨୦୧୬ର ମଧ୍ୟବର୍ତ୍ତୀ ସମୟ ବେଳକୁ ଭାରତରେ ପାଖାପାଖି ୧୫କୋଟିରୁ ଉର୍ଦ୍ଧ୍ୱ ସାମାଜିକ ଗଣମାଧ୍ୟମ ବ୍ୟବହାରକାରୀ ଅଛନ୍ତି । ଏଥିରୁ ୧୩କୋଟି ଉପଭୋକ୍ତା ମୋବାଇଲ୍ ମାଧ୍ୟମରେ ସାମାଜିକ ଗଣମାଧ୍ୟମର ବ୍ୟବହାର କରୁଛନ୍ତି।

ସୋସିଆଲ ମିଡ଼ିଆ ଆମ ବାସ୍ତବ ଜୀବନର ସାମାଜିକ ସଙ୍ଗଠନ ଠାରୁ କିଛି ଅଲଗା ନୁହେଁ । ଜାତି, ଧର୍ମ, ବର୍ଣ୍ଣ, ସ୍ଥାନ, ଜୀବିକା ଭଳି ବିଭିନ୍ନ ବର୍ଗକୁ ନେଇ ଅଲଗା ଅଲଗା ସଂଘ, ସମାଜ ଥିବାପରି ଇଣ୍ଟରନେଟ୍ ବ୍ୟବହାର କାରୀ ନିଜର ଆଗ୍ରହ, ରୁଚି ଓ ଉଦ୍ଦେଶ୍ୟରୁ ପୂରଣ କରିବା ଲାଗି ସମଭାବାପନ୍ନ ବ୍ୟକ୍ତିଙ୍କ ସହ ନେଟ୍‌ରେ ବନ୍ଧୁତା ବାନ୍ଧନ୍ତି । ତା'ପରେ ସୃଷ୍ଟି କରନ୍ତି ଗୋଷ୍ଠୀ । ସମଗ୍ର ପୃଥିବୀ ଏହାର ପରିସର । ତେବେ ଏଥିଲାଗି ଏହି ବ୍ୟକ୍ତିମାନେ କୌଣସି ଏକ ସ୍ଥାନରେ ସଶରୀରରେ ଉପସ୍ଥିତ ହେବାର ଆବଶ୍ୟକତା ନାହିଁ । ଏମାନେ ଇଣ୍ଟରନେଟ୍ ଜରିଆରେ ଏକାଠି ହୁଅନ୍ତି । ସୁଖଦୁଃଖ ବାଣ୍ଟନ୍ତି, ଉପହାର ଦିଆନିଆ ହୁଅନ୍ତି । ଆଳାପ ଆଲୋଚନା କରନ୍ତି । ବିବିଧ ବିଷୟରେ ଚର୍ଚ୍ଚା କରନ୍ତି । ଏ ପ୍ରକାର ଗୋଷ୍ଠୀ ମିଳିତ ହେବାଲାଗି ରହିଛି ଭିନ୍ନ ଭିନ୍ନ ବହୁ ୱେବସାଇଟ୍ । ଏହି ୱେବସାଇଟ୍ ଗୁଡ଼ିକ ହେଉଛି ସୋସିଆଲ ନେଟୱାର୍କିଂର ମାଧ । ଏଗୁଡ଼ିକର କାର୍ଯ୍ୟ ହେଲା, ନେଟୱାର୍କ ତିଆରି କରି ସେଥିରେ ସଂଯୁକ୍ତ ଥିବା ସଦସ୍ୟମାନଙ୍କୁ ଉପରୋକ୍ତ ସୁବିଧା ଯୋଗାଇ ଦେବା ।

ଆଜିକାଲି ଯୁବପିଢ଼ି ତଥା ସ୍ମାର୍ଟ ଓ ଅପଟୁଡେଟ୍ ବୁଦ୍ଧିଜୀବୀମାନେ ସୋସିଆଲ ମିଡ଼ିଆରେ ଖୁବ୍ ସକ୍ରିୟ । ବିଭିନ୍ନ ପ୍ରସଙ୍ଗ ଉପରେ ମତ ବିନିମୟ, ସୂଚନାର ଆଦାନ ପ୍ରଦାନ ଓ ବ୍ୟକ୍ତିଗତ ସମ୍ପର୍କର ସମ୍ପ୍ରସାରଣର ମାଧ୍ୟମ ହୋଇଉଠିଛି ଫେସ୍‌ବୁକ୍, ହ୍ୱାଟ୍ସଆପ୍, ଟ୍ୱିଟର, ଇନ୍‌ଷ୍ଟାଗ୍ରାମ, ଅରକୁଟ ଭଳି ସୋସିଆଲ ମିଡ଼ିଆ । ସାଧାରଣ ଲୋକଙ୍କ ସହିତ କ୍ରୀଡ଼ା, କଳା, ସାହିତ୍ୟ, ସମାଜସେବା, ସାମ୍ବାଦିକତା, ମନୋରଞ୍ଜନ, ରାଜନୀତି ଆଦି କ୍ଷେତ୍ରରେ ସକ୍ରିୟ ଥିବା ବହୁ ସଫଳ ଓ ବିଶିଷ୍ଟ ବ୍ୟକ୍ତି ସୋସିଆଲ ମିଡ଼ିଆର ସଦସ୍ୟ । ଏଥିରେ ବିଭିନ୍ନ ପ୍ରସଙ୍ଗ ଉପରେ ଅନ୍ୟମାନଙ୍କର ମତାମତ ଗଢ଼ିହେବା ସହ ଯେକୌଣସି ପ୍ରସଙ୍ଗ ଉପରେ ସ୍ୱାଧୀନ ମତ ବି ପ୍ରକାଶ କରିହେଉଛି । ପୁଣି ପରିଚିତ, ଅପରିଚିତ ଯୋଡ଼ି ହେବା ସହ ପୁରୁଣା ସମ୍ପର୍କକୁ ବି ଏହା ମଧ୍ୟମରେ ଉଜ୍ଜୀବିତ କରାଯାଇପାରୁଛି । ତେଣୁ ସବୁ ବର୍ଗର ଲୋକଙ୍କୁ ବାନ୍ଧି ରଖିବା ସହିତ ସମସ୍ତ ପ୍ରକାର ଖବର ମୁହୂର୍ତ୍ତକ ମଧ୍ୟରେ ଜଣାଇବାରେ ସକ୍ଷମ ହୋଇପାରିଛି ସୋସିଆଲ୍ ମିଡ଼ିଆ ।

ସେହିପରି ଆଧୁନିକ ପିଢ଼ି ସୋସିଆଲ୍ ମିଡ଼ିଆରେ ତା'ଠାରୁ କାହିଁ କେତେ ଦୂର ଦେଶ-ବିଦେଶର ଅଜଣା ପିଲା ସହ ଅତି ଆଦରରେ ବନ୍ଧୁତା ସ୍ଥାପନ କରି ଭାବର ଆଦାନ ପ୍ରଦାନ କରୁଛନ୍ତି । ସୋସିଆଲ୍ ନେଟ୍‌ୱାର୍କର ଚାଟ୍‌ରୁମ ବା ଫ୍ରେଣ୍ଡସିପ୍ ସାଇଟ୍ ମାଧ୍ୟମରେ ଦେଶ ତଥା ଦେଶ ବାହାରେ କୋଣ ଅନୁକୋଣରୁ ମତ ମୁତାବକ ବନ୍ଧୁ ବାଛୁଛନ୍ତି । ବେଳେବେଳେ ପୁଅ ବା ଝିଅ ବନ୍ଧୁ ହୋଇ ଜୀବନସାଥୀ ବି ହୋଇଛନ୍ତି ।

ସୋସିଆଲ ନେଟୱାର୍କର ବିବିଧ ଭଲ ଭିତରେ ମଣିଷ ନିଜ ପାଇଁ ସୃଷ୍ଟି କରିଛି ବହୁ ଭେଲ । ବିଶ୍ୱବାସୀଙ୍କୁ ବନ୍ଧୁତ୍ୱ ସୂତ୍ରରେ ବାନ୍ଧି ରଖିଥିବା ସୋସିଆଲ ମିଡ଼ିଆରେ ଅନେକଙ୍କର ଦିନର ଅଧିକାଂଶ ସମୟ କଟିଯାଉଛି । ଏହାଦ୍ୱାରା ନିଜ ଅଜାଣତରେ ନିଜର କ୍ଷତି ହିଁ ହେଉଛି । ବିଶ୍ୱ ସମୁଦାୟ ସହ ଯୋଡ଼ିହେବା ତଥା ଜୀବନର ବିରକ୍ତି ଭାବକୁ ଦୂରେଇବା ପାଇଁ ଏସବୁ ଏକ ଭଲ ମାଧ୍ୟମ । ମାତ୍ର ତାହା ଧୀରେ ଧୀରେ ଆମର ଏକ ପ୍ରକାର ନିଶା ପାଲଟିଛି । ଲ୍ୟାପଟପ୍, ଟ୍ୟାବ୍, ମୋବାଇଲରେ ନୂଆ ନୂଆ ଆପ୍ଲିକେସନ୍ ଡ଼ାଉନଲୋଡ୍ କରି ଦିନରାତି ସେଥିରେ ବୁଡ଼ି ରହୁଛନ୍ତି ଅନେକ । ଫୁରସତ୍ ମିଳୁନାହିଁ ବିଭିନ୍ନ ସୋସିଆଲ୍ ନେଟୱାର୍କି ସାଇଟ୍‌ରୁ । ଭାରତରେ ସୋସିଆଲ୍ ମିଡ଼ିଆ ବ୍ୟବହାରକାରୀଙ୍କ ସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇବାରେ ଲାଗିଛି । ସମସ୍ତଙ୍କ ଭିତରେ ଏହା ସଂକ୍ରାମକ ବ୍ୟାଧି ଭଳି ବ୍ୟାପିଚାଲିଛି । ମାଦକ ଦ୍ରବ୍ୟ ନିଶା ଭଳି ଏଥିପ୍ରତି ବଢୁଥିବା ନିଶା ଉଭୟ ଶାରୀରିକ ଓ ମାନସିକ ଦୃଷ୍ଟିରୁ କ୍ଷତିକାରକ । ନିଶା ନ ପାଇଲେ ନିଶାଖୋର ବ୍ୟକ୍ତିର ଆଚରଣ ପରି ସୋସିଆଲ ମିଡ଼ିଆ ନିଶାଧାରୀ ବ୍ୟକ୍ତିକୁ ଏଥିରୁ ନିବୃତ୍ତ ରଖିଲେ ସେ ହୋଇଯାଏ ବିଚଳିତ । ଏସବୁ ଏବେ ଆମ ଜୀବନକୁ କବଳିତ କରିସାରିଲାଣି । ଏ ପ୍ରକାର ନିଶାରେ ପ୍ରାୟ ସମସ୍ତେ କବଳିତ । ବିଶେଷକରି ପାଠ ପଢୁଆ ପିଲାଙ୍କ ମଧ୍ୟରେ ସୋସିଆଲ ମିଡ଼ିଆ ବ୍ୟବହାର କରିବାର ପ୍ରବଣତା ଅଧିକ । ଦିନର ପ୍ରାୟ ଅଧାଅଧି ସମୟ କଟିଯାଉଛି ସୋସିଆଲ୍ ମିଡ଼ିଆରେ । ଏତକ ସମୟ ଅନ୍‌ଲାଇନ୍ ରହି ସେମାନେ ଏକ ପ୍ରକାର କାଳ୍ପନିକ ଦୁନିଆରେ ବଞ୍ଚୁଛନ୍ତି । ଏଥିପ୍ରତି ସଜାଗ ନ ହେଲେ ପରବର୍ତ୍ତୀ ସମୟରେ ଏହା ପିଲାଙ୍କ ସୁନେଲି ଭବିଷ୍ୟତ ପ୍ରତି କ୍ଷତି ପହଞ୍ଚାଇବାର ଯଥେଷ୍ଟ ଭୟ ରହିଛି ।

କଲେଜ ପଢୁଆ ପିଲାଙ୍କ ଲାଗି ସୋସିଆଲ୍ ନେଟ୍‌ୱାର୍କ ପାଲଟିଛି ନିଶା । ଆଧୁନିକ ପଢି ନିଜ ଆଖପାଖରେ ଥିବା ସମପିଢ଼ିଙ୍କ ସହ ବନ୍ଧୁତା ରଖିବାକୁ ପସନ୍ଦ କରୁନାହାନ୍ତି । କିନ୍ତୁ ସୋସିଆଲ ମିଡ଼ିଆରେ ଦୂରଦୂରାନ୍ତର ଅଜଣା ପିଲା ସହ ବନ୍ଧୁତା କରୁଛନ୍ତି । ତେଣିକି ବ୍ୟକ୍ତିଗତ ଭାବରେ ତାକୁ ଜାଣୁ ବା ନ ଜାଣୁ, ଦେଖିଥାଉ ବା ଦେଖି ନ ଥାଉ । ଏହି ଅଜଣା ଅର୍ବାଚିନ ବନ୍ଧୁଙ୍କ ସହ ଫଟୋ, ଭିଡ଼ିଓ ତଥା ଜୀବନର ବ୍ୟକ୍ତିଗତ ଓ ଗୁରୁତ୍ୱପୂର୍ଣ୍ଣ ଘଟଣାକୁ ସେୟାର କରିବା ସହ ପସନ୍ଦ, ନା ପସନ୍ଦ ଓ ସମସ୍ତ ପ୍ରକାର କାର୍ଯ୍ୟକଳାପକୁ ସେମାନେ ବିନା ଦ୍ୱିଧାରେ ପରସ୍ପର ମଧ୍ୟରେ ବାଣ୍ଟୁଛନ୍ତି । ଫଳରେ ସେମାନେ ଅନାୟସରେ ଠକାମିରେ ପଡୁଛନ୍ତି । ସେହିପରି ସୋସିଆଲ ମିଡ଼ିଆରେ ନିଜର ବ୍ୟକ୍ତିଗତ ଫଟୋଚିତ୍ର, ଭିଡ଼ିଓ ଆଦି ଅପ୍‌ଲୋଡ୍ କଲେ ତାହା କେଉଁଠି କିଭଳି ବ୍ୟବହୃତ ହେବ, ସେ କଥା କହିବା ସମ୍ଭବ ନୁହେଁ । ଅନେକ ଝିଅ ସୋସିଆଲ ମିଡ଼ିଆରେ ବନ୍ଧୁତା କରି ନିଜର ଭିଡ଼ିଓ ଓ ଫଟୋଗ୍ରାଫ୍

ଦିଆନିଆ କରିବା ପରେ ଜାଣୁଛନ୍ତି । ସେ ଯାହା ସହିତ ବନ୍ଧୁତା କରିଥିଲେ, ତାହା ଏକ ନକଲି ପରିଚୟ ବା ଫେକ୍ ଆଇଡ଼ି ବା ସେମିତି କେହି ଲୋକ ହିଁ ନାହାନ୍ତି । ହେଲେ ସେୟାର କରିଥିବା ନିଜର ବ୍ୟକ୍ତିଗତ ଫଟୋ ବା ଭିଡ଼ିଓ ଏଡ଼ିଟ୍ ହୋଇ ବିଭିନ୍ନ ସୋସିଆଲ୍ ସାଇଟ୍‌ରେ ନଗ୍ନଚିତ୍ର ଭାବେ ପ୍ରଦର୍ଶିତ ହୋଇଛି । ଏମିତି ଘଟଣା ବାରମ୍ବାର ଘଟୁଛି, ଯାହାକୁ ନିୟନ୍ତ୍ରଣ କରିବା ସମ୍ଭବ ହେଉନାହିଁ । ଏସବୁ ଘଟଣା ବାରମ୍ବାର ଗଣମାଧ୍ୟମରେ ଆସୁଥିଲେ ମଧ୍ୟ ଯୁବପିଢ଼ିଙ୍କ ସୋସିଆଲ୍ ମିଡ଼ିଆରେ ନିଜକୁ ବିଜ୍ଞପିତ କରିବାର ନିଶା କମୁନାହିଁ ।

ବୃତ୍ତିଗତ ଶିକ୍ଷାରେ ପାଠ ପଢୁଥିବା ପିଲାମାନେ ସୋସିଆଲ ମିଡ଼ିଆରେ ଭରପୂର ଫାଇଦା ନେବା କଥା । କାରଣ ସେମାନେ ଏହିସବୁ ସାଇଟ୍‌ରେ ବନ୍ଧୁତା କରି ନିଜର କ୍ୟାରିଅରକୁ ନୂଆ ମୋଡ଼ ଦେବା କଥା । ହେଲେ ଅଧିକାଂଶ ପିଲା ଏହି ସାଇଟ୍‌ରେ ପାଠ ଓ କ୍ୟାରିୟର କଥା ଆଦାନ ପ୍ରଦାନ କରିବା ବଦଳରେ ଅନ୍ୟ କଥାରେ ବ୍ୟସ୍ତ ରହୁଛନ୍ତି । ଆଜିକାଲି ଅଧିକାଂଶ ପିଲା ନିଜର ମୋବାଇଲ୍ ମାଧ୍ୟମରେ ସବୁ ସମୟରେ ଅନ୍‌ଲାଇନ୍ ରହିବା ସହ ସାଙ୍ଗ ସହ ଅଯଥା ଚାଟିଂରେ ବହୁ ସମୟ ନଷ୍ଟ କରୁଛନ୍ତି । କିନ୍ତୁ ଇଣ୍ଟରନେଟ୍‌ରେ ବନ୍ଧୁତା ଭଲ କି ନୁହେଁ । ତାହା ଜାଣିବାର ଉପାୟ ନାହିଁ । ଜାଣିବାକୁ ହେବ, ବିଭିନ୍ନ ସୋସିଆଲ୍ ମିଡ଼ିଆ ଏକ ଅଦୃଶ୍ୟ ଦୁନିଆ । ଏଥିସହ ସଂଯୁକ୍ତ ଏମିତି ବହୁସଂଖ୍ୟକ ଲୋକ ଅଛନ୍ତି, ଯେଉଁମାନେ ବାସ୍ତବରେ ସଂସାରରେ ବି ନାହାନ୍ତି । ଅର୍ଥାତ୍ ଏମାନେ ଏକଦମ୍ ନ କଲି । ତେଣୁ ସୋସିଆଲ୍ ମିଡ଼ିଆରେ ବନ୍ଧୁତା ଯେ ପ୍ରକୃତ ବନ୍ଧୁତା, ତାହା କହିବା ଠିକ୍ ନୁହେଁ । ସେମିତି ଏହା ମାଧ୍ୟମରେ କୌଣସି ବିଷୟ ପ୍ରତି ବହୁଳ ସମର୍ଥନ ଯେ ବାସ୍ତବରେ ବହୁ ଜଣଙ୍କ ସମର୍ଥନ, ଏହା ଭାବିବା ବୋକାମୀ । ଉଗ୍ରବାଦ, ଆତଙ୍କବାଦର ପ୍ରଚାରରେ ମଧ୍ୟ ମୁଖ୍ୟ ମାଧ୍ୟମ ସାଜିଛି ସୋସିଆଲ ମିଡ଼ିଆ । ଅପରାଧ ପ୍ରବଣ ଲୋକ ଏହାକୁ ମାଧ୍ୟମ କରି ବିଭିନ୍ନ ଅପରାଧ ମୂଳକ କାର୍ଯ୍ୟ ସହଜରେ କରିପାରୁଛି । ଠିକ୍ ସେମିତି କିଛି ନକାରାତ୍ମକ ଲୋକଙ୍କ ପାଇଁ ନଗ୍ନ ଫଟୋ, ଭିଡ଼ିଓ ଭାଇରାଲ ହେବାରେ ଲାଗିଛି ସୋସିଆଲ୍ ମିଡ଼ିଆରେ ।

ଆଜି ସୋସିଆଲ୍ ମିଡିଆ ସାମାଜିକ ପରିଚୟର ସଂଜ୍ଞାକୁ ନୂତନଭାବେ ପରିଭାଷିତ କରିଛି । ବ୍ୟକ୍ତି ତାହାର ବାସ୍ତବ ଦୁନିଆ ସାଙ୍ଗସାଥୀ, ବନ୍ଧୁବାନ୍ଧବ ଓ ସାଇପଡ଼ିଶାଙ୍କ ଠାରୁ ଦୂରେଇଯାଇ ବିଭିନ୍ନ ସୋସିଆଲ ସାଇଟ୍ରେ ଲାଇକ୍, କମେଣ୍ଟ୍ ଓ ଲମ୍ବିଚାଲିଥିବା ବନ୍ଧୁ ତାଲିକା ହିଁ ସମାଜର ପରିଭାଷା ପାଲଟିଛି। ବ୍ୟକ୍ତି ଆଜି ଫେସବୁକ୍, ହ୍ୱାଟ୍ସଅପ୍, ଇଷ୍ଟାଗ୍ରାମ୍ ଆଦିରେ ବ୍ୟସ୍ତ ରହୁଛି ଓ କ୍ରମେ ସମାଜଠାରୁ ଦୂରେଇ ଯାଉଛି । ଫଳରେ ସମ୍ପର୍କ ହୋଇପଡୁଛି ଦୁର୍ବଳ । କେହି କେହି ସୋସିଆଲ ମିଡ଼ିଆରେ ଅପ୍‌ଡ଼େଟ୍ ରହିବାକୁ ଯାଇ ନିଜ ଜୀବନର ସତ ଖୁସି ଠାରୁ ଦୂରେଇ ଯାଉଛନ୍ତି । ଆମ ଭିତରୁ ଅଧିକାଂଶ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ସହ କିମ୍ବା ବିଭିନ୍ନ ଉତ୍ସବ ଓ ପୂଜାପର୍ବରେ ଫଟୋ ଉଠାଇ ସୋସିଆଲ ମିଡ଼ିଆରେ ଅପଲୋଡ଼ କରିବା ନିଶାରେ ଏତେ ନିମଗ୍ନ ରହୁଛନ୍ତି ଯେ, ସେହି ପରିବେଶର ପ୍ରକୃତ ଖୁସି ଉପଭୋଗ କରିପାରୁନାହାନ୍ତି, ନିଜର ଷ୍ଟାଟସ୍ ଅପ୍‌ଡ଼େଟ୍ କରିବାକୁ ଯାଇ ଅନେକ ନିଜର ଖୁସିକୁ ଅଧାରେ ଛାଡ଼ି ଆସୁଛନ୍ତି ।

ସାମାଜିକ ଗଣମାଧ୍ୟମରେ ପ୍ରଭାବ ସବୁ ଭାଷା ଉପରେ ରହିଛି, ଏହା କେବଳ ଓଡ଼ିଆ କିମ୍ବା ଅନ୍ୟ ଭାଷା ପାଇଁ ନୁହେଁ । ଏହି ପ୍ରଭାବ ଧିରେ ଧିରେ ଭାଷାକୁ ନୂତନ ରୂପ, ରଙ୍ଗ-ନୂତନଶୈଳୀରେ ପରିବେଷଣ କରିବାରେ ଲାଗିଛି । ସମୟ ସହିତ ତାଳ ଦେଇ ସାମାଜିକ ଗଣମାଧ୍ୟମ ବର୍ତ୍ତମାନର ସ୍ଥିତିରେ କ୍ଷିପ୍ରଗତିରେ ଲୋକପ୍ରିୟତା ବଢ଼ାଇବାରେ ଲାଗିଛି । ସବୁବର୍ଗର, ସବୁବୟସର ଓ ସବୁସ୍ତରର ଲୋକଙ୍କ ନିମନ୍ତେ ଆଜି ସାମାଜିକ ଗଣମାଧ୍ୟମ ଅତ୍ୟାବଶ୍ୟକ ହୋଇପଡ଼ିଛି । ଏବର ଗଣମାଧ୍ୟମରେ ବିଜ୍ଞାପନ, ସୂଚନା, ନିଯୁକ୍ତି, ରାଜନୀତି, ସାହିତ୍ୟ, ସଂସ୍କୃତି, ଲୋକ ସମ୍ପର୍କିତ ଖବର ସବୁର ସୂଚନା ରହୁଛି । ଏଥିରେ ଲୋକଙ୍କ ମତ, ମନ୍ତବ୍ୟ, ଆଲୋଚନା, ସମାଲୋଚନା ଭଳି ଖବର ପ୍ରସାରଣର କ୍ଷେତ୍ର ବଢ଼ିଛି । ସେହିଭଳି ସାମାଜିକ ଗଣମାଧ୍ୟମରେ ସୂଚନା, ଲୋକ ସମ୍ପର୍କିତ ଖବର, ମତାମତ ଏସବୁ ବ୍ୟବହାରକାରୀଙ୍କ ରୁଚି, ଆଗ୍ରହ, ଆବଶ୍ୟକତାକୁ ଲକ୍ଷ୍ୟକରି ଖୁବ୍ କମ୍ ସମୟରେ ଅପରପକ୍ଷ ଠାରେ ପହଞ୍ଚାଯାଇପାରୁଛି । ବର୍ତ୍ତମାନ କଲ୍ ଏବଂ ମେସେଜକୁ ଛାଡ଼ି ସବୁ କ୍ଷେତ୍ରରେ ଡ଼ାଟାର ସୁବିଧା ବ୍ୟବହାରକାରୀଙ୍କୁ ସାମାଜିକ ଗଣମାଧ୍ୟମର ଉପଯୋଗ କରିବାପାଇଁ ଏକପ୍ରକାର ଉତ୍ସାହ ଆଣିଦେଇଛି । ଏସବୁ ଦୃଷ୍ଟିରୁ ଦେଖିଲେ ବ୍ୟବହାରକର୍ତ୍ତାଙ୍କ ଆବଶ୍ୟକତାକୁ ଉପଲବ୍ଧି କରି ସାମାଜିକ ଗଣମାଧ୍ୟମ ନୂତନ ନୂତନ ଆପ୍ ଜରିଆରେ ବିଭିନ୍ନ ସୁବିଧା ଲୋକଙ୍କୁ ଯୋଗାଇଦେଉଛି ।

**ସହାୟକ ଗ୍ରନ୍ଥ:**


୧. କାମଥ୍, ଏମ୍. ଭି - The journalism Handbook, ବିକାଶ ପବ୍ଲିଶିଙ୍ଗ୍ ହାଉସ୍, ନୂଆଦିଲ୍ଲୀ, ୧୯୯୫

୨. ମହାପାତ୍ର, ଚନ୍ଦ୍ରଶେଖର - ସମ୍ବାଦ ଓ ସାମ୍ବାଦିକତା, ପ୍ରଥମ ଓ ଦ୍ୱିତୀୟ ଭାଗ, ଓଡ଼ିଶା ରାଜ୍ୟ ପାଠ୍ୟ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର – ୧୯୭୫

୩. ୱାଟ୍‌ସନ, ଯେମ୍‌ସ - Media Communication, ମାକ୍‌ମିଲନ୍ ପ୍ରେସ୍ ଲିଃ, ଲଣ୍ଡନ ୧୯୯୮

୪. TalkWalker, 'Social media statistics in India', https://www.talkwalker.com/blog/social-media-statistics-in-india

୫. David Crystral, 'Language & the Internet', Cambridge University Press, Printed Edition, 2001